# ସୂତ୍ରବାକ୍ୟ ।

ଶ୍ରୀମାଧବଚନ୍ଦ୍ର ମିଶ୍ର ଶର୍ମ୍ମା
ବାଙ୍କି ।

# ଉତ୍ସର୍ଗ ପତ୍ର ।

ସକଳ କଲ୍ୟାଣ ଭାଜନ , ବିବିଧ ସଦ୍ଗୁଣ ନିଧାନ , ପରମ ମାନନୀୟ ଶ୍ରୀଳ ଶ୍ରୀଯୁକ୍ତ ବାମଣ୍ଡାଧୀଶ୍ୱର ଶ୍ରୀ ଶ୍ରୀ ତ୍ରିବ୍ୟଶଙ୍କର ସୁଢ଼ଳଦେବ କି ସି ଇ

ମହୋଦୟ——ମହନୀୟ ଚରିତେଷୁ

ଶ୍ରୀମନ୍ ମହାରାଜ ,

ଯେଉଁ ବାମଣ୍ଡା ରାଜବଂଶ ଏହି ଓ ପଶ୍ଚିମାଞ୍ଚଳର ପ୍ରଧାନ ଆଶ୍ରୟ ସ୍ଥଳ ବୋଲି ଉତ୍କଳରେ ସୁପରିଚିତ, ଶ୍ରୀଶ୍ରୀମୁ ବର୍ତ୍ତମାନ ସେହି ବଂଶର ବିଖ୍ୟାତ ଉଦ୍ଦୀପ୍ୟମାନ ସୁସନ୍ତାନ - କାରଣ " ଆକରେ ପଦ୍ମରାଗାଣାଂ ଜନ୍ମକାଚ ମଣେଃ କୁତଃ " ମୋହର ଏହି " ଗୁରୁବାକ୍ୟ " ନାମକ କ୍ଷୁଦ୍ର ପୁସ୍ତିକାଟି ମୋହର ଗୁରୁଦେବ ଶ୍ରୀ ଶ୍ରୀ ୬ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ଉପଦେଶ ଓ ସଙ୍କେତକ୍ରମେ ଲିଖିତ ସେହି ଉତ୍କଳର ଗୌରବ ବର୍ଦ୍ଧକ ପ୍ରଧାନ ପଣ୍ଡିତ ମହାଶୟ ଶ୍ରୀମୁଙ୍କର ପିତାମହ ଉତ୍କଳ ବିକ୍ରମାଦିତ୍ୟ ଚିରସ୍ମରଣୀୟ ଶ୍ରୀ ଶ୍ରୀ ରାଜା ସୁଢ଼ଳ ଦେବଙ୍କର ପ୍ରଧାନ ସଙ୍ଗୀ ଓ ସଭାପଣ୍ଡିତ ଥିଲେ , ଏବଂ ବାମଣ୍ଡାରେ ତାଙ୍କର ପ୍ରଶସ୍ତି ବିଶେଷ ରୂପରେ ହୋଇଥିଲା । ଅଦ୍ୟାବଧି ଶ୍ରୀମୁଙ୍କ ପ୍ରଦତ୍ତ ବୃତ୍ତି ଉକ୍ତ ପଣ୍ଡିତ ମହାଶୟଙ୍କର ବଂଶଧର ମାନେ ଭୋଗ କରୁଅଛନ୍ତି । ଏଣୁ ତାଙ୍କର ସ୍ମୃତି ରକ୍ଷା ନିମିତ୍ତ ଏହି କ୍ଷୁଦ୍ର ପୁସ୍ତିକାଟି ଶ୍ରୀଶ୍ରୀମୁଙ୍କ କର କମଳରେ ଉତ୍ସର୍ଗ କଲି । ଇତି

| | | |
|---|---|---|
| କ୍ଷମାର ଗାଁ | } | ଶ୍ରୀ ଶ୍ରୀମୁଙ୍କ |
| ବାଲି । | } | କୃପା ପ୍ରାର୍ଥୀ |

ଶ୍ରୀ ମାଧବଚନ୍ଦ୍ର ମିଶ୍ର ଶର୍ମ୍ମା ।



ଓଁ

ନମୋ ଭଗବତେ
ବାସୁଦେବାୟ ।



# ଭୂମିକା ।

କବିତା ଲେଖି ଲେଖକ - ଗୌରବ ଅର୍ଜନ କରିବା ଅଭିପ୍ରାୟରେ ଏପୁସ୍ତକ ଲିଖିତ ହୋଇନାହିଁ । କାରଣ ।

ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟାତତ୍ର ସୁଦୁର୍ଲ୍ଲଭା
କବିତ୍ୱଂ ଦୁର୍ଲ୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁଦୁର୍ଲ୍ଲଭା ।

ଏପରି ସ୍ଥଳେ ମାଦୃଶ ଘୋର ପ୍ରକୃତି ମନୁଷ୍ୟ ପଦବାଚ୍ୟ ହେବା ବିଷୟେ ସନ୍ଦେହ ଥିବାଠାରେ କବିତ୍ୱ ଗୌରବ ପ୍ରତି ଦୁରାକାଂକ୍ଷା କରିବା ବାତୁଳତା ମାତ୍ର । ଏଥିପୂର୍ବରୁ ସ ୩ । ୪ ଟି କ୍ଷୁଦ୍ର ପୁସ୍ତକ ଲେଖିଥିଲେ ସୁଦ୍ଧା ତାହା କବିତା ମଧ୍ୟରେ ଗଣ୍ୟ ନୁହେଁ କହିଲେ ଚଳେ । କେବଳ ହୃଦୟର ଆବେଗ ବଶତଃ ଅବକାଶ କାଳରେ ଅନ୍ତ୍ରବିଳମ୍ବ ନେଇ ଯଥାଶକ୍ତି ଲେଖିଅଛି । ମାତ୍ର ଛଗିରିପ୍ତା ଗଡଧାମସ୍ଥ ହରିହର ପୁର ଶାସନ ନିବାସୀ ମୋର ପରମାତ୍ମୀୟ ପଣ୍ଡିତ ସ୍ୱବର୍ଣ୍ଣ ପୂଜ୍ୟପାଦ ଗୁରୁଦେବ ୬ ଭୁବନେଶ୍ୱର ବଡପଣ୍ଡା ମହୋଦୟଙ୍କ ସହବାସ ସୌଭାଗ୍ୟ କିମ୍ବା ମୋ ପକ୍ଷରେ ଏକ ସମୟରେ ସୁଲଭ ଥିଲା । ସେହି ସମୟରେ ଉକ୍ତ ମହାତ୍ମାଙ୍କ ସାହାଯ୍ୟ । ଓ ସଦୁପଦେଶ ବଳରେ ନାନାବିଧ ଶିକ୍ଷାପ୍ରଦ ଶାସ୍ତ୍ରୀୟ ବିଷୟ ମାନଙ୍କର ଆଲୋଚନା କରିପାରିଥିଲି । ସେଥିରୁ କେତେକ ସାର କଥା

ପଦ୍ୟଟିରେ ପ୍ରକାଶ କରାଯାଇଅଛି । ଉକ୍ତ ମହାତ୍ମା ତାଙ୍କ ସ୍ୱର୍ଗାରୋହଣର ଅଳ୍ପଦିନ ପୂର୍ବରୁ ଦିନେ ବେଦାର୍ଚ୍ଚନା ସମୟେ ମୋତେ ପାଖକୁ ଡାକି କହିଥିଲେ "ନବୁଝି ମନରେ, ବୃଥା ସଂସାରରେ ଭ୍ରମୁଛନ୍ତି ନରେ" ଏହି ପଦ୍ୟାଂଶଟି ପୂରଣ

୪

କର, ମୁଁ ଆଦେଶ ପ୍ରଣୋଦିତ ହୋଇ ଗୁରୁଦେବଙ୍କ ସମକ୍ଷରେ ଯେ କେତୋଟି ପଦ ଲେଖିଥିଲି ତାହା ମୋ "ପଣାସାର" ବହିରେ ଦିଆଯାଇଥିଲା । ଇତି ମଧ୍ୟରେ ପ୍ରଶଂସିତ ମହୋଦୟ କବି ସ୍ୱର୍ଗାରୋହଣାନ୍ତେ ପୁନଶ୍ଚ ମୋର ମାତୃକଳ୍ପା ଜ୍ୟେଷ୍ଠା ଭ୍ରାତୃ ଜାୟାଙ୍କ ଲୋକାନ୍ତର ଘଟି ମନରେ ଘୋର ଅଶାନ୍ତି ପ୍ରଦାନ କରିଥିଲା । ପୁଣି କିଛିଦିନ ହେଲା ମୋର ଏକମାତ୍ର ସ୍ନେହର କନିଷ୍ଠ ଭ୍ରାତା (ଗୁରୁଦେବ ୰ ଭୁବନେଶ୍ୱର ବଡ଼ପଣ୍ଡାଙ୍କ ଜ୍ୟେଷ୍ଠପୁତ୍ର ଶ୍ରୀପତି ବିଦ୍ୟାଭୂଷଣଙ୍କ ପୋଷ୍ୟ-ପୁତ୍ର) ବଳଭଦ୍ରର ପରଲୋକ ଘଟିବାରୁ ପୂର୍ବ ଅଶାନ୍ତି ସହସ୍ର ଗୁଣରେ ବଢ଼ିବାକୁ ଲାଗିଲା । ସେହି ଅଶାନ୍ତିରେ ବୃଢ଼ି ତନା କରିବା ସମୟରେ ଗୁରୁଦେବଙ୍କର ସେହି "ନବୁଝି ମନରେ" ପଦ୍ୟାଂଶଟି ମାନସାକାଶରେ ପୁନରୁଦ୍ଦୀପିତ ହେବାରୁ ବିଭିନ୍ନ ସମୟରେ ଗୋଟିଏ ୨ କରି ପୁସ୍ତକ ସ୍ଥିତ ଯେ କେତେକ ଶ୍ଳୋକ ଲେଖିଥିଲି । ଅଧୁନା ଉକ୍ତ ମହାତ୍ମାଙ୍କ ଅନୁଶାସନ ପାଳନ ଏବଂ ନିଜର ଚିତ୍ତଶାନ୍ତି ନିମିତ୍ତ ସେ ସମସ୍ତ ପଦ ଏକତ୍ର କରି ପ୍ରକାଶ କଲି । ଏତଦ୍ୱାରା କାହାର ମନରେ କିଞ୍ଚିତ୍ ସଦ୍ଭାବ ଜନ୍ମିଲେ ଶ୍ରମ ସଫଳ ଜ୍ଞାନ କରିବି ।

ବିଶେଷ ଶ୍ଳାଘନୀୟ ଏହା ଯେ ଉପରୋକ୍ତ ମହାନୁଭବଙ୍କର ପ୍ରପୌତ୍ର ପ୍ରପୌତ୍ରୀ ଅନାଥ ଶିଶୁ ଶ୍ରୀମାନ୍ ମହେଶ୍ୱର, କୃଷ୍ଣ, ଗୋବିନ୍ଦ ଓ ଶ୍ରୀମତି ଲକ୍ଷ୍ମୀ ପ୍ରଭୃତିଙ୍କର ଲେଖନ ପଠନାଦିର ଭାର ବହନ କରିବା ଦୈବକ୍ରମେ ମୋ ଉପରେ ପଡ଼ିଅଛି, କିନ୍ତୁ ମୋର ଆର୍ଥିକ ଅବସ୍ଥା ସେତେ ଭଲ ନୁହେଁ। ଏଣୁ ସେହି ସ୍ୱର୍ଗତ ମହାତ୍ମାଙ୍କ ରଚିତ ଉପଦେଶ କ୍ରମେ ଲିଖିତ ଓ ପ୍ରକାଶିତ ଏହି "ଗୁରୁବାକ୍ୟ" ନାମଧେୟ ପଦ୍ୟ ପୁସ୍ତିକାଟି ପ୍ରଚାର କରି ତହିଁର ଲବ୍ଧ ଅର୍ଥକୁ ସେହି ଅନାଥ ଶିଶୁ ମାନଙ୍କର ଶିକ୍ଷାରେ ବ୍ୟୟ କରିବାକୁ ମାନସ କରିଅଛି। ସାହିତ୍ୟସେବୀ ମହାତ୍ମା ମାନଙ୍କୁ ବିନୀତ ଅନୁରୋଧ ଯେ ସେମାନେ ସହାନୁଭୂତି ପ୍ରକାଶ ପୂର୍ବକ ଖଣ୍ଡିଏ ୨ ପୁସ୍ତକ ଗ୍ରହଣ କରି ମୋର ଏହି କ୍ଷୁଦ୍ର ଆଶା ଉଦ୍ଦେଶ୍ୟ ପୂରଣ କରିବେ। ଇତି

ଲେଖକ।



# ମନ୍ତବ୍ୟ ।

ଏଗ୍ରନ୍ଥଟି ଅମ୍ଭେ ଆଦ୍ୟୋପାନ୍ତ ପାଠକରି ଦେଖିଲୁଁ ଯେ ଏହା ଅତି ସରଳତା ଯୋଗେ ପାଠକ ମାନଙ୍କର ଅତ୍ୟନ୍ତ ସୁବୋଧ୍ୟ ହୋଇଅଛି ଏବଂ ସର୍ବାଙ୍ଗୀନସାହିତ୍ୟ ଗୁଣ ପ୍ରସାଦାଦି ରସ ଅଲଙ୍କାରାଦିରେ ପୂର୍ଣ୍ଣ ଅଛି । ଏବଂ ଏହି ଗ୍ରନ୍ଥ ପାଠକଲେ ମଧ୍ୟ ସୁଶିକ୍ଷିତବ୍ୟକ୍ତି ମାନଙ୍କର ଅନ୍ତଃକରଣରେ ପରମାର୍ଥ ଜ୍ଞାନୋତ୍ପତ୍ତି ଦ୍ୱାରା ସଂସାରର ଅନିତ୍ୟତା ଏବଂ ନାଶ ପୂର୍ବକ-ଅର୍ଥୋପାର୍ଜ୍ଜନାଦି କାର୍ଯ୍ୟ ମାନଙ୍କର କର୍ତ୍ତବ୍ୟତା ବୁଦ୍ଧି ଉତ୍ପନ୍ନ ହେବା ବିଷୟରେ କୌଣସି ସନ୍ଦେହ ନାହିଁ । ଏହିପରି ପୁସ୍ତକ ମାନଙ୍କୁ ସୁଶିକ୍ଷିତ ବ୍ୟକ୍ତିମାନେ ରଚନା କରିବା ସମ୍ବନ୍ଧେ ପ୍ରବୃତ୍ତ ହେବା ନିତାନ୍ତ ବାଞ୍ଛନୀୟ । ଅତଏବ ଏହିଗ୍ରନ୍ଥ କର୍ତ୍ତା ଶ୍ରୀମାନ୍ ବାବୁ ମାଧବଚନ୍ଦ୍ର ମିଶ୍ରଙ୍କୁ ଅମ୍ଭେ ଧନ୍ୟବାଦ ରୂପ ପୁରସ୍କାର ପ୍ରଦାନକଲୁଁ । ଅଉ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ଯେ ଶିକ୍ଷିତବ୍ୟକ୍ତିମାନେ ଏହିପରି ଉତ୍କଳୀୟ ଭାଷା-ପ୍ରବନ୍ଧ ରଚନା-ଦ୍ୱାରା ଉତ୍କଳର ଭାଗ୍ୟ-ଗୌରବ ରକ୍ଷାକରନ୍ତୁ ।

ଶ୍ରୀ ଶାସ୍ତ୍ରୀ ଚିନ୍ତାମଣି ମିଶ୍ର ଶର୍ମ୍ମା । ତର୍କବାଚସ୍ପତି ଦେବଗଡ଼, ରାଜସଭା

୨ - ସାଧ୍ୱିଦଂ କାବ୍ୟଂ ପ୍ରସାଦ ଗୁଣଯୁକ୍ତ ମେତତ୍ ପ୍ରମାଣ କରୋତି କାଶିକା ବାସ୍ତବ୍ୟଃ ଶ୍ରୀଶ୍ରୀଧର ଶାସ୍ତ୍ରୀ ।

ପ୍ରସାଦ ଗୁଣ ବିଶିଷ୍ଟ ହୋଇଥିବାରୁ ଏହି କାବ୍ୟଟି ଉତ୍ତମ ହୋଇଅଛି । କାଶି ବାସୀ ଶ୍ରୀ ଶ୍ରୀଧର ଶାସ୍ତ୍ରୀ ଏହା ପ୍ରମାଣିତ କରୁଅଛନ୍ତି ।

## ଇଂଗ୍ଲଣ୍ଡ ସାର୍ଟିଫିକେଟର ମର୍ମାନୁବାଦ ।

ଶ୍ରୀଯୁକ୍ତ ବାବୁ ମାଧବ ଚନ୍ଦ୍ର ମିଶ୍ରଙ୍କ "ଗୁରୁପ୍ରସାଦ" ନାମକ କବିତା-ପୁସ୍ତକ ପଢ଼ି ପ୍ରୀତ ହେଲି । ଲେଖକଙ୍କ ଗୁରୁ-ଦେବ ଯେଉଁ ନୈତିକ ଉପଦେଶାବଳୀ ତାହାଙ୍କୁ ଦେଇ-ଥିଲେ ସେ ସବୁକୁ ସେ କେତେଗୁଡ଼ିଏ ଗୀତ ଛନ୍ଦରେ ସରଳ ପଦ୍ୟରେ ନିବଦ୍ଧ କରିଅଛନ୍ତି ; ଉଦ୍ଦେଶ୍ୟ—ତାହାଙ୍କ ଯେଉଁ ପିତୃହୀନ ଭ୍ରାତୁଷ୍ପୁତ୍ର ମାନଙ୍କ ଶିକ୍ଷା ପାଇଁ ସେ ଉଦ୍‌ଗ୍ରୀବ ଯତ୍ନପରାୟଣ, ସେମାନେ ତଦ୍ଦ୍ୱାରା ନୈତିକ ଉନ୍ନତି ଲାଭ କରି ପାରିବେ । ମୋର ବିଶ୍ୱାସ—ନିମ୍ନ ପ୍ରାଇ-ମେରି ବିଦ୍ୟାଳୟ ସମୂହର ବାଳକ ବାଳିକା ମାନେ ଏହି ପୁସ୍ତକରୁ ଉଲ୍ଲେଖ୍ୟରୂପେ ଉପକାର ପାଇ ପାରିବେ । ଏହି ବିଦ୍ୟାଳୟ ମାନଙ୍କରେ ଏହା ନୀତିଶିକ୍ଷା ପାଠ୍ୟ— ଅନ୍ତତଃ ପାରିତୋଷିକ-ପୁସ୍ତକରୂପେ ପ୍ରଚଳିତ ହୋଇ ପାରେ ।

ପଠା ମୁଣ୍ଡାଇ
ତା ୨୨।୨।୧୯

ଅଶରଫ ଅଲି ବାକ୍ୟରତ୍ନାକର
ସବ୍-ରେଜିଷ୍ଟର





## ଗୁରୁଦେବଙ୍କ ପ୍ରତି ।

"ଭୁବନ ଈଶ୍ବର" ନାମଟି ତୁମ୍ଭର
ତୁମ୍ଭେ ମୋର ମୋକ୍ଷ ସମ୍ପତ୍ତି,

ତୁମ୍ଭ ଆଶିଷରେ ଥିଲେ ଜୀବନରେ
କି କରିବ ତୁଚ୍ଛ ବିପତ୍ତି ।

ଏ ମାୟା ସଂସାରେ ଥାଇ ନିରନ୍ତରେ
ତୁମ୍ଭଙ୍କୁ ଗୁରୁ ବୋ ମାନୁଛି,

ତୁମ୍ଭର ବାକ୍ୟରେ ଯେଣୁ ମୁଁ ହୃଦରେ
ପଦେ ପଦେ ଶାନ୍ତି ପାଉଛି ।

ଆପଣଙ୍କର ସ୍ନେହର ଶିଷ୍ୟ
ମାଧବ—

# ଗୁରୁ ବାକ୍ୟ ।

(ରାଗ ଅଷାଢ଼ ଶୁକ୍ଳ)

ଦିନେ ଗୁରୁଦେବ ନିଜ ଗୃହରେ
ବସାଇ ଶିଷ୍ୟଙ୍କୁ ପାଖେ ସ୍ନେହରେ,
ଉପଦେଶ ଦେଲେ ରଖ ମନରେ,
ଅଛି ଯହା ତତ୍ତ୍ୱ— ଦରଶନରେ,
"ନବୁଝି ମନରେ
ବୃଥା ସଂସାରେ ଭ୍ରମୁଛନ୍ତି ନରେ" ।୧।

ଅଛି ଯେତେ ଧନ ଏ ଭୁବନରେ,
ନୁହେ କିଛି ତୁଲ୍ୟ ବିଦ୍ୟା ସଙ୍ଗରେ,
ମିଏପର ଥାଇ ସଦା ହୃଦରେ,
ଟାଣିନିଏ ପାପୁଁ ପୁଣ୍ୟକୁ ବଳେ,
ବାବୁ ! ନିରନ୍ତରେ
ରଖି ଥାଅ ଆସ୍ଥା ବିଦ୍ୟା-ଧନରେ ।୨।

କରନ୍ତା ଅଭ୍ୟାସ ଯଥା କାଳରେ,
ସରବେ ବିମୁଖ ତାହା ବାଳତରେ,
ସମ୍ପଦେ-ବିପଦେ ସବୁ କ୍ଷଣରେ
ରଖେ ମାତୃରୂପେ ନିଜ ଗୁଣରେ,
ଏକାଗ୍ର ମନରେ
ସେବ ବିଦ୍ୟା-ଦେବୀ ଶ୍ରୀଚରଣରେ ।୩।

ଅସହ ସନ୍ତାପ          ଯେବେ ମନରେ,
କହାଏ ସେ ସୁଖୀ          ଅଶା ଦାନରେ,
ନ ରଖାଏ ତାପ          କ୍ଷଣେ ଚିତ୍ତରେ,
ଚଳାଉ ଥାଏ ସେ          ଧର୍ମ-ପଥରେ ,
ବନ୍ଧୁ ସ୍ୱରୂପରେ
ନ ଦେଖେଁ ତାପର କଷ୍ଟ ସଂସାରେ । ୪ ।

ଉଣା ନୁହଇ ସେ          କେବେ ଦାନରେ ,
ଚତୁର୍ବର୍ଗ ଫଳ          ଦିଏ ଜନରେ,
ଟେକି ଗୁଣବାନ          କୁରୂପେ ଖରେ
ବସାଏ ନିର୍ଗୁଣ          ସୁରୂପୋ ଘରେ,
ଏହି ଜଗତରେ,
ଅନ୍ୟ ଭେଦାଭେଦ ନାହିଁ ତାଠାରେ । ୫ ।

ସେ ବିଦ୍ୟା-ମଳୟ          ନର ହୃଦରେ
ପ୍ରକଟାଇ ଜ୍ଞାନ—          କଢ଼ି ସଦ୍ଧରେ,
ଚହଟାନ୍ତେ ବାସ          ଶଣ୍ଧ-ବନରେ ,
ନାଚଇ ପରାଣ          ହଡୁ ପ୍ରେମରେ ,
**ନବୁଝିମ ନରେ,**
**ବୃଥା** ସଂସାରେ ଭ୍ରମୁଁଛନ୍ତି ନରେ । ୬ ।

ସ୍ୱରଗର ଶିଢ଼ୀ   ଦେଇ ହାତରେ,
ସିଞ୍ଚି ଶାନ୍ତି-ସୁଧା   ହୃଦ କ୍ଷେତରେ,
ଜନମାଏ ସାଧୁ—   ଭାବ ହୃଦରେ,
ବସାଇ ଦିଏ ସେ   ଇନ୍ଦ୍ର ପଦରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୭ ।

୮ ସ୍ୱାସ୍ଥ୍ୟ-ଧନ ବାବୁ!   ରଖ ସାଦରେ,
ଚିନ୍ତ ଭବ ଦ୍ୟତ   ଜନ୍ମ ଆଦ୍ୟରେ,
ଡାକ ଈଶ୍ୱରଙ୍କୁ   ଶୁଦ୍ଧ ମୁଖରେ,
ଚରକାଳ କଟି—   ଯିବ ସୁଖରେ ,
ଏହି ବିଧାନରେ
ଚଳୁଥିଲେ ସର୍ବ ଶୁଭ ପ୍ରାଣରେ । ୮ ।
ବିପଦେ ଧୀର ଯେ   ନିଜ ଗୁଣରେ,
ନପଶେ ଦୁଶ୍ଚିନ୍ତା   ଯାଙ୍କ ମନରେ,
ମହାତ୍ମା ବୋଲନ୍ତି   ତାଙ୍କୁ ଭବରେ,
ଚଳିବାରୁ ସଦା   ଧର୍ମ୍ମ ଭାବରେ,
ସୁଖେ କି ଦୁଃଖରେ,
ହର୍ଷ-ବିଷାଦ ନ ପଶେ ମୁଖରେ । ୯ ।

ଭାଳୁଥିଲେ ବସି ଏକ ଧ୍ୟାନରେ,
ଏହା ଅନୁଭୂତ ହୁଏ ଜ୍ଞାନରେ,
ରହୁଛନ୍ତି ପ୍ରଭୁ ସର୍ବ ଘଟରେ,
ଅଗ୍ନି ଥାଏ ଯଥା ଶୁଷ୍କ କାଷ୍ଠରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୧୦ ।

ଧେନ ଗାଢ଼-ରତ୍ନ ହାର କଣ୍ଠରେ,
ନଚଢ଼ ଗରବ- ପରବତରେ,
ସ୍ନେହ- ଦୟା- ପ୍ରିତି-ଭକ୍ତି-ଧନରେ
ସାଧୁଥାଅ ପ୍ରାଣୀ- ହୃଦ ସଂସାରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୧୧ ।

ନଆଣ କୁତ୍ସିତ — କଥା ମୁଖରେ,
ରଖ ସୁବର୍ଣ୍ଣାସ ବେଦ ବାକ୍ୟରେ,
ରହୁଛି ସୁଶିକ୍ଷା ଗୁରୁ ବାକ୍ୟରେ,
ଲଭ "ସୁନାପୁଅ" ହୁଅ ଲୋକରେ,
ଗୁରୁ ଆଶିଷରେ
ମୂକ ବାବଦୂକ ହୁଏ ଶେଷରେ । ୧୨ ।

ନ ହଣ କପଟ ଦାମ୍ଭିକ ପାଶରେ,
ରହୁଥାଅ ସାଧୁ- ସହବାସରେ,
ନ ପଡ଼ କଦାପି ପର ବୁଦ୍ଧିରେ,
ଗୃଲୁଥାଅ ବାଟ ଶାସ୍ତ୍ର ବଥ୍ୟରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁ’ଛନ୍ତି ନରେ । ୧୩ ।

ପ୍ରଭୁର ସମତା- ନୀତି ସୃଷ୍ଟିରେ,
ଦେଖ ଜଗତକୁ ପ୍ରେମଦୃଷ୍ଟିରେ,
ନ ଆଚର ଦ୍ୱେଷ ଜୀବ ଗଣରେ,
କର ଉପକାର ପ୍ରାଣପଣରେ ,
ଥିଲେ ଏ ନୀତିରେ,
କାଳେ କାଳେ ନାମ ଥିବ କ୍ଷିତିରେ । ୧୪ ।

ନିଜ ନିନ୍ଦା ଶୁଣି ପର ମୁଖରେ
ନ କର ବିବାଦ ତା’ ବିପକ୍ଷରେ ,
ନ ବଳାଅ ମତି ହୀନ କର୍ମରେ,
ନ କର ବଡ଼ାଇ ନିଜ ଗୁଣରେ,
ଥିଲେ ଏ ପଣରେ,
ଲଭିବ ସମ୍ମାନ ନିଶ୍ଚେ ଜନରେ । ୧୫ ।

ନ ଅନ୍ୱେଷ ଦୋଷ ପରସ୍ପରରେ,
ଥାଅ ନିଜ ତାର ପ୍ରତିକୂଳରେ,
ମନକୁ ନିବେଶି ସଦୁପାୟରେ
ଗୁଣର ପ୍ରଶଂସା କର ଲୋକରେ,

**ନବୁଝି ମନରେ,**

ଦେଉଥାନ୍ତି ଦୋଷ ଅନ୍ୟ ଉପରେ । ୧୬ ।

ନହୁଅ ସନ୍ତୁଷ୍ଟ ଯେ ବ୍ୟବହାରେ,
ନ ଦେଖାଅ ତାହା କେବେ ବାହାରେ,
ଆପଣାକୁ କ୍ଷୁଦ୍ର ହବ ଚିତ୍ତରେ
ଦେଖ ନିଜ ଦୋଷ ଜ୍ଞାନ-ନେତ୍ରରେ,
ବୁଝ ଏ ମତରେ,
ସରବେ ଅପଣା ପଛ କ୍ଷିତିରେ । ୧୭ ।

ସଦା ଉଚ୍ଚ ଲକ୍ଷ୍ୟ ରଖି ମନରେ
ସାଧିବ କର୍ତ୍ତବ୍ୟ ଏ ଜୀବନରେ,
ନ ଯିବ କୁମାର୍ଗେ ପ୍ରଲୋଭନରେ,
ସମ୍ପାଦିବ କାର୍ଯ୍ୟ ଆତ୍ମ ଜ୍ଞାନରେ,
ଅନ ଅବହେଳେ,
ମନୁଷ୍ୟତା ହକି- ଯିବ ଅଟରେ । ୧୮ ।

ନିଜ ଦୁର୍ବଳତା   କାହା ପାଶରେ
ନ କର ପ୍ରକାଶ   ମନ-ପ୍ରାଣରେ,
ରଖି ହୃଦ ମାନ   ନିଜ ହାତରେ
ହୁଅ ଅଗ୍ରସର   କର୍ମ କ୍ଷେତ୍ରରେ,
ସମସ୍ତେ ଦେଖିଲେ
ଦଗ୍ଧହେବ ନିଷ୍ଟେ କ୍ଷୋଭ-ଅନଳେ । ୧୯ ।
ନୋହି ଲୋଭି ଧନ   ଥାଅ ଧର୍ମରେ,
ନ ବଳାଅ ଚିତ୍ତ   ଅଧରମରେ,
ନହୁଅ ଜଡ଼ିତ   ନିଜ ସ୍ୱାର୍ଥରେ,
ଦିଅ ପ୍ରାଣ-ମନ   ଦେଶ ହିତରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୨୦ ।
ନାନା ମୁନିଙ୍କର   ନାନା ମତରେ
ଶ୍ରୁତି-ସ୍ମୃତି ଭିନ୍ନ   ଆଦ୍ୟୋପାନ୍ତରେ ,
ଏଣୁ ଧର୍ମ ତତ୍ତ୍ୱ   ଅଛି ସୂକ୍ଷ୍ମରେ-
ଦେଖିବ, ଚଳିଲେ   ସାଧୁ ସଙ୍ଗରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୨୧ ।

କରି ଅନୁତାପ   କୃତ ଦୋଷରେ
କ୍ଷମା ପ୍ରାର୍ଥୀ ହେଲେ   ପ୍ରଭୁ ପାଶରେ,
ଧରମ-ବିବେକ   ମିଳି ବୃନ୍ଦରେ
ବିହରିବେ ସଦା   ହୃଦ କ୍ଷେତ୍ରରେ ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୧୨ ।

ପାପ-ତାପ-ତପ୍ତ-   ଭବ-ମରୁରେ
ଧର୍ମ ବିଟପ ଏକା   ଛାୟା-ତରୁରେ,
ସତ୍ୟ-ପ୍ରିୟ ଋଷି-   ବଂଶଜ-ନରେ
ଶାନ୍ତ ଲଭୁଛନ୍ତି   ତା' ଆଶ୍ରୟରେ ;
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୧୩ ।

ସ୍ୱାର୍ଥ ପାଇଁ ମୂର୍ଖ   ପାପ କର୍ମରେ-
ଥାଏ ଲିପ୍ତ, କିନ୍ତୁ   ପଣ୍ଡିତ ନରେ
ଅହିଂସା-ଧରମ   ଧରି ହୃଦରେ
ସାଧନ୍ତି ନିଷ୍କାମ   କର୍ମ ସାଦରେ ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୧୪ ।

ଧର୍ମ ଶ୍ରେଷ୍ଠ ସଖା ସବୁ କାଳରେ,
ଧର୍ମୀ ପଡ଼େ ନାହିଁ କ୍ଳେଶ-ଜାଳରେ,
ନାଶଯାନ୍ତି ଶତ୍ରୁ ଧର୍ମ ବଳରେ,
ଧର୍ମ ଏକା ତରୀ ଭବ- ଜଳରେ,
ନ ବୁଝି ମନରେ,
ବୃଥା ଧର୍ମ-ମାର୍ଗ ଛାଡ଼ନ୍ତି ନରେ । ୧୫ ।

ଷଡ଼ରିପୁ'ଛନ୍ତି ହୃଦ-କ୍ଷେତ୍ରରେ,
ଯୁଝ ତାଙ୍କ ସଙ୍ଗେ ଜ୍ଞାନ-ଅସ୍ତ୍ରରେ,
ସନ୍ଥଜନମାନେ ଏହି ରୂପରେ
ଜିଣିଥାନ୍ତି ତାଙ୍କୁ ଅନାୟାସରେ,
ନ ବୁଝି ମନରେ,
ବୃଥା ଯୁଦ୍ଧେ ସିନା ମାତନ୍ତି ନରେ । ୧୬ ।

ଉପାର୍ଜ୍ଜିତ ବିତ୍ତ ବନ୍ଧମୟରେ
ଚଳନ୍ତି ପ୍ରାଣୀଏ ବ୍ୟବସାୟରେ,
ନ ଥିଲେ ଧରମ—ଧନ ମୂଳରେ
ନ ଆସେ ତା ସୁଖ ଅନୁକୂଳରେ,
ଶୁଣି'ଛ ଶାସ୍ତ୍ରରେ,
କି ଫଳ ଅଛି କୃପଣ ବିତ୍ତରେ । ୧୭ ।

ସତ୍ୟପ୍ରିୟ ରାମ    ତ୍ରେତା ଯୁଗରେ
ନ ବଳାଇ ଶ୍ରଦ୍ଧା    ରାଜଭୋଗରେ,
ହେଲେ ବନଗାମୀ    ପିତୃ କାର୍ଯ୍ୟରେ,
ରଖି ଏହୁ ନୀତି    ସ୍ମୃତି ପଟରେ
କର୍ମ୍ମ ଆଚରିଲେ,
ସର୍ବଦେବ- ପ୍ରୀତି ଲଭିବ ହେଲେ । ୨୮ ।

କେବେ ସତ୍ୟଶୀଳ    ବକ୍ର ଭାଷାରେ
ନ କହେ କାହାକୁ    ନିନ୍ଦା ସଂସାରେ,
ମିଥ୍ୟାବାଦୀ ମିଥ୍ୟା    କହୁ ନର୍କରେ
ପଡ଼ିଥାଏ ଜନ୍ମେ    ଜନ୍ମେ ଦୁଃଖରେ,
ନବୁଝି ମନରେ,
ଅସତ୍ୟ ମାର୍ଗେ ଧାଉଁନ୍ତୁ ନରେ । ୨୯ ।

ରଖି ଅନୁରାଗ    ସତ୍ୟ ଧର୍ମ୍ମରେ,
ଚଳ ନ୍ୟାୟ ପଥେ    ସାଧୁ କର୍ମ୍ମରେ,
କାର୍ଯ୍ୟ ସାଧି ସିଦ୍ଧ— ପରାକ୍ରମରେ
ଅରଜ ସୁଖ୍ୟାତି    ଧରାଧାମରେ,
ଯେମନ୍ତେ ମୃତ୍ୟୁ ପରେ
ରହୁଥିବ ନାମ ଧରାତଳରେ । ୩୦ ।

ବରଜଲେ ମିଥ୍ୟା ସର୍ବ ପ୍ରକାରେ
ନ ଲାଗିବ ମଳ ସତ୍ୟ ଅଙ୍ଗରେ,
ପୋଷିଲେ ସତ୍ୟ ଭାବ ହୃଦରେ
ପ୍ରଶଂସିବେ ଶତ୍ରୁ ମଧ୍ୟ ଆଦରେ,
ନ ବୁଝି ମନରେ,
ମିଥ୍ୟା କହ ସତ୍ୟ ହରାନ୍ତ ନରେ । ୬୧ ।

ରହୁଥିବ ସଦା ଶିଷ୍ଟାଚାରରେ,
ହେଉଥିବ ଦୁଃଖୀ ପର ଦୁଃଖରେ,
ତ୍ୟାଗଭାବ ରଖି ଶୁଦ୍ଧ ଚିତ୍ତରେ
କରୁଥିବ ଦାନ ଶାସ୍ତ୍ର ମତରେ,
ନ ବୁଝି ମନରେ,
ଚଳୁଛନ୍ତ ଲୋକେ ନାନା ମତରେ । ୬୨ ।

ହୀନ ହୁଏ ନର ଭିକ୍ଷା କର୍ମରେ,
ମହତ୍ତ୍ୱ ଆଚର ଦାନ-ଧର୍ମରେ,
ଦେଶ-କାଳ-ପାତ୍ର- ତୀର୍ଥ ସ୍ଥାନରେ
କଲେ ଦାନ, ଗଣ୍ୟ ଶ୍ରେଷ୍ଠ ଦାନରେ,
ନ ବୁଝି ମନରେ,
ହୀନ ଆଚରଣ କରନ୍ତ ନରେ । ୬୩ ।

କରୁଥିଲେ ଦାନ ସ୍ୱଚ୍ଛ ମନରେ,
ନଥିଲେ ଗରବ ଲିବେ ଜ୍ଞାନରେ,
ଥିଲେ କ୍ଷମା ଗୁଣ ପ୍ରଭୁ-ପଣରେ,
ଦୁର୍ବଳ ଜାଣିଣ ଲଭ୍ୟ ପ୍ରାଣରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଛନ୍ତି ନରେ । ୩୪ ।

ଆଚରିବ ସମ— ପ୍ରୀତି ଲୋକରେ,
ଭକ୍ଷିବ ସୁଚିନ୍ତା କରି ଚିତ୍ତରେ,
ବୈର-ଭାବ ଦେଇ ଲୋକ ସଙ୍ଗରେ
ଅପମାନ ପାଶୁଁ ଥାଅ ଦୂରରେ,
ନବୁଝି ମନରେ,
ବୃଥା ଅଭିମାନୀ ହୁଅନ୍ତି ନରେ । ୩୫ ।

ହୋଇଲେ ବିନୀତ ସର୍ବ ଲୋକରେ,
ପୂଜିଲେ ଅତିଥି ଯଥା ବଳରେ,
ରଖିଲେ ଅଭ୍ୟାସ ସଦାଳାପରେ,
ଲଭିବ ଉନ୍ନତି ଜନପଦରେ
ଏ ନୀତି ପଥରେ,
ଚଳୁଥିବ ଶ୍ରଦ୍ଧା ରଖି ଚିତ୍ତରେ । ୩୬ ।

କେବେ ଭକ୍ତ ଭୟ ଏ ଜୀବନରେ
ପହଞ୍ଚିଲେ ଆସି ଅକସ୍ମାତରେ,
ଧୃତି-ବିଶ୍ୱାସ—ବିକ୍ରମ- ବଳରେ
ଲଙ୍ଘିବ ସେ ଭୟ ଅନାୟାସରେ ,
ଅଧୀର ହୋଇଲେ
ବଡ଼ ଅଙ୍କ ଏ ବୋଲିବେ ମହୀରେ ।୩୭ ।

ବଢ଼ିଲେ ପଣ୍ଡିତ ଜନ ସଙ୍ଗରେ,
ଗଢ଼ିବ ସୌଭାଗ୍ୟ ନିଜ ହାତରେ,
ଥିଲେ ଏକାଗ୍ରତା ସତ- କର୍ମରେ,
ଉଠିବ ସୁନାମ ପରିଣାମରେ,
ନ ବୁଝି ମନରେ,
ବୃଥା କୁସଙ୍ଗେ ନାଶଯାନ୍ତୁ ନରେ । ୩୮ ।

ପୋଷିଲେ ଦରିଦ୍ର ନିଜ ବିତ୍ତରେ,
ଥିଲେ ଉଦାରତା ସର୍ବ ଭୂତରେ,
ସମ୍ମାନ-ଗୌରବ ଲଭି ତ୍ୱରିରେ
ଯଶରେ ଅମର ହେବ ଧରିରେ,
ନର ଜୀବନରେ
ଏଥୁଁ ଅଧିକ କିବା ଭୁବନରେ । ୩୯ ।

କରିବ ବସତି ପଛେ ବନରେ,
ନ କରିବ ସଙ୍ଗ ହୀନ-ଜନରେ,
ନ ଥିଲେ ପ୍ରବୃତ୍ତି ନିନ୍ଦ୍ୟ କର୍ମରେ,
ନ ବାଧିବ କଚ୍ଛ ଦୁଃଖ ମର୍ମରେ,
ମାନବ ଜନ୍ମରେ,
ମନ ବହିଥିବ ଚିର ଶର୍ମରେ । ୪୦ ।

ଶଶିକର ସମ ଏ ଜଗତରେ
ଉପୁଜାନ୍ତି ସାଧୁ ମୋଦ ଚିତ୍ତରେ,
ନ କରିବ ହେଳା କେବେହେଁ ବେଳରେ
ତାଙ୍କ ମନ-ପ୍ରୀତି—ଅନୁକୂଳରେ,
ଅନାଦର କଲେ
ମୂର୍ଖ ବୋଲାଇବ ପଣ୍ଡିତ ମେଳେ ।୪୧।

ମାତୃ ଭୂମିସୁତ— ଗଣ ମଧ୍ୟରେ
ଦେଖେ ଯେ ଅନ୍ୟକୁ ଈର୍ଷା-ନେତ୍ରରେ ,
ମନୁଷ୍ୟତା—ହୀନ ଯୋଗେ ସଂସାରରେ
ହୁଏ ସଦା ଦ୍ୱେଷ୍ୟ ସେ ଜନତାରେ,
ନ ବୁଝି ମନରେ ,
ବୃଥା ଈର୍ଷାପର ହୁଅନ୍ତୁ ନରେ । ୪୨ ।

ପଡ଼ିରହୁ ମୋହେ ପରାଧୀନରେ,
ଛାଡ଼ି ନିଜ ସୁଖ ମୂର୍ଖ ପଣରେ,
ଦିଅନ୍ତି ଯେ ଦୃଷ୍ଟି ପର ଧନରେ;
କୁବୁଦ୍ଧି ବୋଲନ୍ତି ତାହାକୁ ନରେ,
ରଖ ହେ ମନରେ,
ନ ପଡ଼ିବ ସେହି ପ୍ରଲୋଭନରେ । ୪୩ ।

କରେ ଯେ କୁକାର୍ଯ୍ୟ ପ୍ରତିକ୍ଷଣରେ,
ଅଖି ଥାଉଁ ଗଣା ଅନ୍ଧ ଜନରେ,
ନାହିଁ ଯାର କର୍ଣ୍ଣ ହିତ ବାକ୍ୟରେ,
ଧ୍ରୁବ ବଧିର ସେ ନର ଲୋକରେ,
ମନ୍ଦ କରମରେ
ବୃଥା ଅନ୍ନ-କାଳ, ପଡ଼ି ଭ୍ରମରେ । ୪୪ ।

ହେବାଯାଏ ପ୍ରାଣ କଣ୍ଠ ଗତରେ,
ନାହିଁ ନିର୍ମ୍ମଳତା ଯାର ଚିତ୍ତରେ,
କି ଫଳ ତାହାର ତୀର୍ଥ ବ୍ରତରେ ?
ଲେଖା ସେ ବାଳକ ପାପିଷ୍ଠରେ,
ଜାଣିଲେହେଁ ନରେ
ପଡ଼ନ୍ତି ପୁଣି ପାପ-ଗହନରେ । ୪୫ ।

ପାପିଷ୍ଠ ସେହୁ  ବୋଲାଏ ଜନରେ,
ହରାଇ ବିବେକ  ଯେ ଗୋପନରେ
ଆଚରଇ ପାପ  ପ୍ରୀତ ମନରେ,
ଲୁଚୁଥାଏ ତା'  ପୁଣି ଯତ୍ନରେ,
ଶେଷ ଜୀବନରେ
ନାନା-ଯାତନା ଭୁଞ୍ଜେ ଭୁବନରେ । ୪୬ ।

ଥାଅ ବା ନ ଥାଅ  କିସି ଦୋଷରେ,
ଆସେ ସୁଖ-ଦୁଃଖ  କର୍ମ ବଶରେ,
ଥିଲେଟି ଜାଗ୍ରତ  କର୍ମ ସିଦ୍ଧିରେ,
ଘଟେ ଫଳଲାଭ  ଭାଗ୍ୟ- ବୃଦ୍ଧିରେ;
ବାବୁ ! ଯତନରେ
ଚାଲ ଭାଗ୍ୟ-ଦେବୀ  ସୁକଲ୍ୟାଣରେ । ୪୭ ।

ସୁଖ ବୋଲି  ଯାହା  ଏ ଜଗତରେ,
ଲୁଚିଥାଏ ଦୁଃଖ  ତହିଁ ଭିତରେ,
କିନ୍ତୁ ଦୁଃଖ ଯାହା  ଲୋକ-ବାଞ୍ଛରେ,
ଅସୁଥାଏ ସୁଖ  ତାର ପଛରେ ,
ନ ଭାଳି ମନରେ
ବୃଥା କାତର ହେଉଥାନ୍ତି ନରେ । ୪୮ ।

କୃତ ପାପ ଶଲ୍ୟ—ରୂପେ ପ୍ରାଣରେ
ଫୁଟି ପୀଡ଼େ ଯାକୁ ପ୍ରତିକ୍ଷଣରେ ,
ଅନୁତାପ ବିନା ଏ ଭୁବନରେ
ନାହିଁ ପ୍ରତିକାର କେବେ ଅନରେ,
**ନବୁଝି ମନରେ,**
**ବୃଥା** ଅନ୍ୟ ମାର୍ଗ ଲୋଡ଼ନ୍ତି ନରେ । ୪୯ ।

ଅତି ତୁଚ୍ଛ ବୋଲି ଘୃଣା ନେତ୍ରରେ
ଦେଖେ ଯାହା ନର କର୍ମ କ୍ଷେତ୍ରରେ ,
ହୋଇପାରେ ତାହା ଶ୍ରେଷ୍ଠ ସୃଷ୍ଟିରେ,
ବିଧାତା ଆଦେଶେ କାଳ- ଦୃଷ୍ଟିରେ,
ଏଣୁ ପ୍ରକୃତରେ
ତୁଚ୍ଛ ନମଣ କିଛି ଜଗତରେ । ୫୦ ।

ଲିହିଛି ବିଧାତା ଯାହା ଭାଲରେ,
ନ ହୁଅଇ ଆନ କାହା ବଳରେ,
ଭୁଞ୍ଜନ୍ତି ଅର୍ଜିତ କରମ ନରେ,
ଥାନ୍ତୁ ବଣରେ ବା ପ୍ରଭୁ ପଣରେ,
**ନବୁଝି ମନରେ,**
**ବୃଥା** ଅହଙ୍କାର କରନ୍ତି ନରେ । ୫୧ ।

ରହନ୍ତି ସନ୍ତୋଷ ଯାହା ମନରେ,
ନାହିଁ ତାର ଲୋଭ ପରଧନରେ,
ଲୋଭୀ ଲୋଡ଼ ଧନ ନାନା-ମାର୍ଗରେ
ଲଭେ ଅସନ୍ତୋଷ—ଫଳ ଶେଷରେ,
ନବୁଝି ମନରେ,
ବୃଥା ଲୋଭଗ୍ରସ୍ତ ହୁଅନ୍ତୁ ନରେ । ୫୨ ।

ନ ଥାଏ ସନ୍ତୋଷ ଯେ ମାନବରେ,
ଅରଣ୍ୟ ମଣେ ସେ ଥିଲେ ନବରେ,
ଥାଏ ସଦା ତୋଷ ଯାହା ମନରେ,
ରାଜ-ସୁଖ ଭୁଞ୍ଜେ ସେ କାନନରେ,
ନବୁଝି ମନରେ,
ବୃଥା ଅସନ୍ତୁଷ୍ଟ ହୁଅନ୍ତୁ ନରେ । ୫୩ ।

ନିନ୍ଦ ଥାଏ ହିତ—ସମ୍ପାଦନରେ,
ନ ରଖେ ପାଇବା ଆଶା ମନରେ,
ପ୍ରତ୍ୟାଶୀ ହୁଅଇ ଯେହୁ ଧନରେ,
ଶଠନିନ୍ଦ ସେହି ସବୁ ସ୍ଥାନରେ,
ବିପଦ କାଳରେ,
ଚତ୍ୱାଯାନ୍ତି ବେକ କାର୍ଯ୍ୟ ବଳରେ । ୫୪ ।

ଢାଳି ସ୍ନେହ-ଜଳ ତପ୍ତ-ପ୍ରାଣରେ,
ବୃଷ୍ଟି ପରଦୁଃଖ ନିବାରଣରେ,
ଅଥବା ସହାୟ ସେ ବିପଦରେ,
ପରମ ବନ୍ଧୁ ସେ ନିର୍ବିବାଦରେ,
ବୁଝିବ ବେଳରେ,
ଯେ ମିତ୍ର, ସେ ମିତ୍ର, ଥିଲେହେଁ ଦୂରେ । ୫୫ ।

ମାତା-ପିତା ପରି ଏ ଭୁବନରେ
ହେବ ହିତକାରୀ କେ ଜୀବନରେ ?
ଆତ୍ମମାନେ କର୍ମ- ନିବନ୍ଧନରେ
ମିତ୍ର ହୋଇଥାନ୍ତି ସିନା ଧନରେ,
ଶୁଦ୍ଧ ଅଶୟରେ
ନ ଦିଅନ୍ତି ଦେଖା ଅସମୟରେ , । ୫୬ ।

ଦେଖି ସୂକ୍ଷ୍ମ ଅନ—ଉଦ୍ଧତା ବିଶ୍ୱରେ
ନିରନ୍ତର ଲୋଭ ରଖି ଅନ୍ତରେ,
ଭାଳନ୍ତି ଏ ଦେହ ନିତ୍ୟରୂପରେ,
ଏ ବଡ ଅଦ୍ଭୁତ କଥା ଲୋକରେ,
ନବୁଝି ମନରେ ,
ବୃଥା ସଂସାରେ ଭ୍ରମୁଅଛନ୍ତି ନରେ । ୫୭ ।

ବିଷ-ଜାତ-ବ୍ରଣ   ପ୍ରାୟ ବେଗରେ
ବଢ଼ୁଅଛି ତୃଷ୍ଣା   ଭବ-ଭୋଗରେ,
ନ ପହୁଞ୍ଚୁ ଲକ୍ଷ୍ୟ-   ଫଳ ପାଖରେ,
ପଡ଼ୁଛନ୍ତି ସର୍ବେ   କାଳମୁଖରେ,
**ନବୁଝି ମନରେ,**
**ବୃଥା** ସଂସାରେ ଭ୍ରମୁଛନ୍ତି ନରେ । ୫୮ ।

ଲଭନ୍ତି ବିପଦେ   ଯେ ଜ୍ଞାନ ନରେ,
ନ ଲଭନ୍ତି ତାହା   ଆନ ବେଳରେ,
ଜ୍ଞାନଏ ସେକାଳେ   ଧୀର ଚିତ୍ତରେ
ଦିଅନ୍ତି ସୁଶିକ୍ଷା   ଏ ଜଗତରେ,
**ନବୁଝି ମନରେ,**
ବିପଦେ ଅଧୀର ହୁଅନ୍ତି ନରେ । ୫୯ ।

କ୍ରୋଧ-ଅଗ୍ନି ଯେବେ   ଉଠେ ମନରେ,
ଗୁରୁ-ଲଘୁ ନ ଘେନଇ   ଜ୍ଞାନରେ,
ପୋଡ଼ିଣ ବିବେକ-   ଶସ୍ୟ ଅଟରେ
ପକାଏ ପ୍ରାଣିକି   ଶୋକ-ସାଗରେ,
**ନବୁଝି ମନରେ ,**
**ବୃଥା** ହୃଦେ କ୍ରୋଧ ପୋଷନ୍ତି ନରେ । ୬୦ ।

ହୁଅନ୍ତି ଚତୁର  ନାନା ଗୁଣରେ,
ନୃପତି-ସଂସର୍ଗେ,  ଦେଶାଟନରେ,
ପଣ୍ଡିତ ମୈତ୍ରିରେ,  କାବ୍ୟ ଜ୍ଞାନରେ,
କରମ ସେବାରେ,  ଅଧ୍ୟୟନରେ,
ନ ବୁଝି ମନରେ,
ବୃଥା ସଂସାରେ ଭ୍ରମୁଁ ଛନ୍ତି ନରେ ।୬୧।

କାମିନୀ-କାଞ୍ଚନ—ଘୋର-ବନରେ
ହୁଅଇ ବିଭ୍ରାନ୍ତ  ଯେ ଅଜ୍ଞାନରେ,
ନୁହେ ସେ ଆଦୃତ  କେବେ ଗୁଣରେ,
ହେବ କି ଯଶସ୍ୱୀ  ସେ ଭୁବନରେ ?
ନ ବୁଝି ମନରେ
ବୃଥା ଭ୍ରମରେ ପଡ଼ୁଛନ୍ତି ନରେ ।୬୨।

ଅଛନ୍ତି ଯେତେକ  ଜନ ସଂସାରେ,
ଗୁଣୀ ସର୍ବେ ଭିନ୍ନ-  ଭିନ୍ନ ଗୁଣରେ,
ଦିଅନ୍ତି ଶିକ୍ଷା ଯେ  ଯେଉଁ ରୂପରେ,
ଚତୁର ଯେ ସାର  ଗ୍ରହଣ କରେ,
ଏଣୁ ଜଗତରେ
ଊଣା ନ ମଣ କହାକୁ ଚିତ୍ତରେ ।୬୩।

"କାଲି କରିବା" ନ ଭାଳ ବୁଦ୍ଧିରେ ,
"କାଲି" ଅଟେ ସିନା ଭାଗ୍ୟବଧିରେ ,
ଯା ସାଧିବ ସାଧ ବର୍ତ୍ତମାନରେ ,
ନ ରଖି ଭରସା ଭବିଷ୍ୟତରେ,
ନବୁଝି ମନରେ,
ବୃଥା ଟାଳଟୁଳ କରନ୍ତି ନରେ । ୬୪ ।

ହୃଦୟ ପଦ୍ମ ଯାର ଜ୍ଞାନରେ,
ଧନେ, ଧନାଭାବେ, ସୁଖୀ ଉଭୟରେ,
ଦେଖେ ଯେ ଜଗତ ଧର୍ମ୍ମ ଦୃଷ୍ଟିରେ ,
ଖ୍ୟାତ ସାଧୁପଦେ ସେହୁ ସୃଷ୍ଟିରେ ,
କରମ କ୍ଷେତ୍ରରେ
ସାଧୁ-ଅସାଧୁ ଚିହ୍ନିବ ଲୋକରେ । ୬୫ ।

ତୋଷେ ପ୍ରଜାଜନେ ଶିକ୍ଷା ଦାନରେ,
ଦେବ-ଦ୍ୱିଜେ, ଭକ୍ତି- ସନମାନରେ,
ରତ ଯେ ଦେଶ- ହିତ ସାଧନରେ,
ଯଥାର୍ଥ ନୃପତି ସେ ଭୁବନରେ,
ରଖ ହେ ମନରେ
ସାକ୍ଷାତ ଦେବ ସେ ବିଶ୍ୱରେ ନରେ । ୬୬ ।

ବଢ଼ୁଅଛୁ ଶିଶୁ ମାତୃ-ସ୍ତନ୍ୟରେ,
ଦେଖି ତାକୁ ପ୍ରତେ ହୁଏ ମନରେ,
ବଢ଼ୁଛି ବୟସ ତା' ଗଣନରେ,
ମାତ୍ର ତା' ଛୁଟୁଛି ପ୍ରତିକ୍ଷଣରେ,
ନବୁଝି ମନରେ,
ବିପରୀତ ଆଶା ପୋଷନ୍ତି ନରେ । ୨୭ ।

ବର୍ଣ୍ଣିଛନ୍ତି କବି ମୁକ୍ତ କଣ୍ଠରେ
ଅଧମ, ମଧ୍ୟମ, ଉତ୍ତମ ନବେ
ଜଣାଯାନ୍ତି ସର୍ବେ କର୍ମ୍ମ-କ୍ଷେତ୍ରରେ ,
ରେଖା ଯଥା ଶିଳା- ସିକତା-ଜଳେ,
ବାକ୍ୟରେ, ଆକାରେ,
ନ ଭୁଲ ଚନ୍ଦ୍ର ତାଙ୍କୁ ବ୍ୟବହାରେ । ୨୮ ।

ପଡୁଥିଲେ ଧାର ଶିଳା ଉପରେ ,
ଶିଳା ଦ୍ରବ ନୁହେ ଯେଉଁ ରୂପରେ,
ଅଧମ ହୃଦୟ ସେହି ପ୍ରକାରେ
ନୁହେ ଦ୍ରବୀଭୂତ କେବେ ଦୈନ୍ୟରେ,
ନବୁଝି ମନରେ ,
ନ କର ଯାଚ୍ଞା ମୂଢ଼ ଜନରେ । ୨୯ ।

କାଟିଦେଲେ ରେଖା ବାଲୁକାପରେ,
ଲିଭିଯାଏ ଯଥା ତା' ଅଳପରେ,
କଲେହେଁ ବାଦ ମଧ୍ୟମ ଲୋକରେ,
ନରହେ ତା' ତଥା ଆଉ ବେଳରେ,
କୌଣସି କାଳରେ
ନ କର ବିବାଦ ତାଙ୍କ ସଙ୍ଗରେ । ୭୦ ।

ପକାଇଲେ ଯେତେ ରେଖା ଜଳରେ,
ତାର ସ୍ଥିତି ଯଥା ନୁହେ ତହିଁରେ,
କଲେ ତଥା ବାଦ ସାଧୁ ସଙ୍ଗରେ,
ନ ରହେ ତା' କେବେ ତାଙ୍କ ହୃଦରେ,
ରଖ ହେ ମନରେ
ନ ରହିବ ସାଧୁନିନ୍ଦା ସ୍ଥାନରେ । ୭୧ ।

ସିଦ୍ଧି ଲାଭ ହେଲେ ମନ୍ଦ କର୍ମରେ,
ଜାଣିବ ତାହା ଅନର୍ଥ ରୂପରେ,
ଭଲ ଚିନ୍ତା ଥିଲେ ହୃଦ ମଧ୍ୟରେ,
ନଷ୍ଟେଁ ବିଭୁକୃପା ମିଳେ ବେଳରେ,
ବିଚାର ମନରେ
ସାଧିବ କର୍ମ ତାଙ୍କ ଧ୍ୟାନରେ । ୭୨ ।

ପରନାରୀ ଆଉ ପର ଧନରେ
ନ ପକାଅ ଦୃଷ୍ଟି ପ୍ରାଣ ପଣରେ,
ଅରଜ ସୁଗତି ପର କାଳରେ,
କର ସୁକାର୍ଯ୍ୟ ବିବେକ ବଳରେ,
ନବୁଝି ମନରେ ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୭୩ ।

ଭୁଲ ଦୁଃଖ-ଶୋକ ଦ୍ରବ୍ୟ ଜ୍ଞାନରେ,
ସ୍ମର ବିଶ୍ୱ ପ୍ରେମ- ମନ୍ତ୍ର ମନରେ,
ରଖି ହୃଦେ ଆସ୍ଥା ବିଭୁ ନାମରେ
ଜ୍ଞାନୀ ଏ ଜାଗ୍ରତ ମରଧାମରେ ,
ନବୁଝି ମନରେ ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୭୪ ।

ତେଜ ଅଭିମାନ ଜଡ ଦେହରେ ,
ନାଶ ପୂର୍ବ ପାପ ଜ୍ଞାନ ବଳରେ,
ରଖି ଲୋଭ ଚିନ୍ତାମଣି ପଦରେ
ହୁଅ ଶୁଚି ପାପ ପ୍ରକ୍ଷାଳନରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୭୫ ।

ନମିବ ଭକତ  ପୂର୍ଣ୍ଣ ହୃଦରେ
ଦେବତା-ମହର୍ଷି- ଗୁରୁ ପଦରେ,
ପୂଜ ଯେଉଁ ପାଦ  ପ୍ରେମ ଅନ୍ତରେ
ପ୍ରହ୍ଲାଦ -ଉଦ୍ଧବ  ଖ୍ୟାତ ଭକ୍ତରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତ ନରେ । ୭୬ ।

କହ ଏ ତତ୍ତ୍ୱର  ସବୁ କାଳରେ,
ସାନ, ବଡ ହୁଏ  ତାଙ୍କ ବଳରେ,
ଅଖିଳ ବ୍ରହ୍ମାଣ୍ଡ  ଯାଙ୍କ ଉଦରେ
ତାଙ୍କୁ ରଖିଛନ୍ତ  ଭକ୍ତେ ହୃଦରେ,
ନବୁଝି ମନରେ
ବୃଥା ସଂସାରେ ଭ୍ରମୁଁଛନ୍ତ ନରେ । ୭୭ ।

ଯଥା ସ୍ୱର୍ଣ୍ଣପାତ୍ରୀ  ମୁଖ୍ୟ ସ୍ୱର୍ଣ୍ଣରେ,
ତଥା ସର୍ବେ ଗୃହ-  ପୂର୍ବ ଦାରୁରେ,
ଏହିରୂପେ ମାୟା  ନାନା କ୍ଷେତ୍ରରେ
ପକାଉଛୁ ଧୂଳ  ପ୍ରାଣୀ ନେତ୍ରରେ,
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତ ନରେ । ୭୮ ।

ପୂର୍ଣ୍ୟଭାବେ ନର ଦିବ୍ୟ ଜ୍ଞାନରେ
ଈଶ୍ୱର ସେବାଦି ଅନୁଷ୍ଠାନରେ
ହୋଇ ନିୟୋଜିତ କାୟ-ମନରେ,
କ୍ଷମ ସ୍ୱର୍ଗ ମୋକ୍ଷ ପ୍ରୟୋଜନରେ,

ନବୁଝି ମନରେ,

ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୨୯ ।

ସାରଥି ଅଶ୍ୱ ରଶ୍ମି ଶାସନରେ
ଯେସନେ ସଂଯତ କରଇ ଯାନରେ
ଇନ୍ଦ୍ରିୟେ ସଂଯତ କରି ମନରେ
ବଳାଅ ମଜ୍ଜ ମୋକ୍ଷ ସାଧନରେ,

ନବୁଝି ମନରେ,

ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୩୦ ।

ପାତକ-ନକ୍ର ଘଟନା-ସ୍ରୋତରେ
ଦୁଷ୍ଟ- ରିପୁ ଷଟ୍କ ଭଙ୍ଗ ବ୍ରାତରେ,
ଧର୍ମ୍ମ-ଜୀବନ ହୁଏ ଅଜ୍ଞାତର,
ବୁଡାଏ ନରକର ଆବର୍ତ୍ତରେ ;

ନବୁଝି ମନରେ,

ବୃଥା ସଂସାରେ ଭ୍ରମୁଁଛନ୍ତି ନରେ । ୩୧ ।

ଥାଏ ଶୋକ ଭୟ ଇଷ୍ଟ କର୍ମରେ,
ଅଛି ତର୍କ ଭୟ ଶାସ୍ତ୍ର ମର୍ମରେ,
ରହୁଛି ଇନ୍ଦ୍ରିୟ ଭୟ ତପରେ,
ନାହିଁ ଭୟ ଏକା ବିଷ୍ଣୁ ଜପରେ,
**ନବୁଝି ମନରେ**
**ବୃଥା** ସଂସାରେ ଭ୍ରମୁଁଛନ୍ତି ନରେ । ୮୨ ।

ହୋଇ ବନ୍ଦୀଭୂତ ମାୟା ପାଶରେ
ନ ଭୁଲ କର୍ତ୍ତବ୍ୟ ଭ୍ରାନ୍ତ ବଶରେ,
ମନ-ମୃଗ, ସୁଖ- ଜଳ- ତୃଷ୍ଣାରେ
ଧାଉଁଛି ବିଷୟ- ମୃଗ ତୃଷ୍ଣାରେ,
**ନବୁଝି ମନରେ**
**ବୃଥା** ସଂସାରେ ଭ୍ରମୁଁଛନ୍ତି ନରେ । ୮୩ ।

ବ୍ୟାଧିମାନେ ଆସି ଶତ୍ରୁ ରୂପରେ
କରନ୍ତି ପ୍ରହାର ଏ ଶରୀରରେ,
ବ୍ୟାଘ୍ରରୂପେ ପୁଣି ଆୟୁ ପଥରେ
ଢାଙ୍କିଅଛି ମୃତ୍ୟୁ ଗ୍ରାସିବ ଥରେ,
**ନବୁଝି ମନରେ**
**ବୃଥା** ସଂସାରେ ଭ୍ରମୁଁଛନ୍ତି ନରେ । ୮୪ ।

କରେଁ ଯେତେ ଦୋଷ ଏ ଜୀବନରେ
ଅଛୁ କିନ୍ତୁ ଆଶା ଶ୍ରୀଚରଣରେ,
ଥାଏଁ ବା ନଥାଏଁ ତବ ଧ୍ୟାନରେ
କ୍ଷମା ହେବ ପ୍ରଭୁ ! ଅଧମ ନରେ ;
ନବୁଝି ମନରେ
ବୃଥା ଭ୍ରମୁଅଛୁ " ମାୟା ସଂସାରେ" । ୮୮ ।

ଏହି ଭିକ୍ଷା ପ୍ରଭୁ ପାଦ ପଦ୍ମରେ,
ଥାଉ ନିତ୍ୟ ଶ୍ରଦ୍ଧା ତବ ନାମରେ,
ଲାଗୁ ମୁଖ ସଦା ତବ ସ୍ତୁତିରେ,
ଘୁଞ୍ଚୁ ମୋ ଅଜ୍ଞାନ ତବ ଭକ୍ତିରେ ;
ନବୁଝି ମନରେ
ବୃଥା ଭ୍ରମୁଅଛୁ " ମାୟା ସଂସାରେ" । ୮୯ ।

ଗୁରୋ ! ଏହି ଦୟା ଥାଉ ଦାସରେ,
ଧୋଏଁ ନବ ଦଉ- ମନ୍ଦ ଆସ୍ୟରେ,
ଦେଖେଁ ତବ ମୂର୍ତ୍ତି ମନ- ନେତ୍ରରେ,
ଲେଖେଁ ଆଜ୍ଞାଲିପି ହୃଦକ୍ଷେତ୍ରରେ ;
ଏ କ୍ଷୁଦ୍ର ପ୍ରାଣରେ
ନ ଭୁଲେଁ ଯେତେଁ ପଡ଼ି ଅଜ୍ଞାନରେ । ୯୦ ।

ଘୋଷୁଥାଅ ଈଶନାମ ସାଦରେ,
ଶ୍ରୁତ ରଖ ଈଶ ଗୁଣ ବାଦରେ
ରଖିଥାଅ ଚିତ୍ତ ଈଶ ପଦରେ,
ଈଶ ମହିମା ଗାଅ ଅନନ୍ଦରେ,
ନବୁଝି ମନରେ
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ ।୮୫।

ମହେଶ୍ୱର- ମହାମନ୍ତ୍ର- ପ୍ଲବରେ
ସିନା ତରନ୍ତି ନିରୂପ ଦ୍ରବରେ,
ପାପୀ ଏ ଭୀଷଣ—ଭବ-ସାଗରେ
ନ ପୁଣି ବିଷୟ ଅନୁରାଗରେ ;
ନବୁଝି ମନରେ,
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ ।୮୬।

ଯା ମହିମା ଶିବ ଯୋଗ ବଳରେ
ଜାଣୁଥିବେ ଅବା ବେଳ ବେଳରେ,
ଯାହାର କଳନା ନାହିଁ ବେଦରେ
ସେ କାହୁଁ ସମ୍ଭବ କ୍ଷୁଦ୍ର ବୋଧରେ,
ନବୁଝି ମନରେ
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ ।୮୭।

ଶୁଣି ତବବାଣୀ ସ୍ମୃତି-ଶ୍ରୁତିରେ,
ଲଭେ ପୁଣି ଦୀକ୍ଷା ଯଥା ଶକ୍ତିରେ,
ତଥାପି ହୃଦୟ ଶୋକ-ଜଳରେ
ଭସେ-ବୁଡ଼େ ମାୟା—ମୋହ-ବଳରେ ;
ଏହୁ ପରି ନରେ
ବୃଥା "ଭ୍ରମୁଁଛନ୍ତି ମାୟା ସଂସାରେ * । ୯୧ ।

ଥାଅ ପଛେ ଗୁରେ ! ବଇକୁଣ୍ଠରେ,
କର ଏ ଆଶିଷ ସ୍ନେହ ମନରେ,
"ଶ୍ରୀଚରଣେ ଭକ୍ତି ରଖି ଅନ୍ତରେ
ଅନୁଗତ ହେବି ମୁଁ ନିରନ୍ତରେ ;
ନବୁଝି ମନରେ
ବୃଥା ଭ୍ରମୁଅଛୁ "ମାୟା ସଂସାରେ" । ୯୨ ।

ଅସ୍ଥାଯୋଗୁଁ ତବ ଉପଦେଶରେ
ଗୁନ୍ଥି ଗୀତ-ପୁଷ୍ପ ଭକତଭଣ୍ଡରେ,
କରୁଛୁ ପ୍ରକାଶ ଅତି ଆଦରେ,
ଦେଉ ଏ ସୁଶିକ୍ଷା ଲୋକ ବୃନ୍ଦରେ,
"ନବୁଝି ମନରେ
ବୃଥା ସଂସାରେ ଭ୍ରମୁଁଛନ୍ତି ନରେ" । ୯୩ ।

